# ଭକ୍ତି-ଅର୍ଘ୍ୟ



ଶ୍ରୀ ପ୍ରଭାକର ପାଣିଗ୍ରାହୀ

# ଭକ୍ତି-ଅର୍ଘ୍ୟ

ଲେଖକ ଓ ପ୍ରକାଶକ

**ଶ୍ରୀ ପ୍ରଭାକର ପାଣିଗ୍ରାହୀ**

ସମ୍ବଲପୁର

ପ୍ରଥମ ମୁଦ୍ରଣ

୧୯୬୪

ଠ ୦ . ୩୫

ମୂଲ୍ୟ ପଚିଶ ପଇସା

## କୃତଜ୍ଞତା-ଜ୍ଞାପନ

ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ବିଦ୍ୟାଧର ବେହେରାଙ୍କ ଅକୁଣ୍ଠିତ ଆର୍ଥିକ ସାହାଯ୍ୟରେ ଏ ଭକ୍ତି-ଅର୍ଘ୍ୟ ପ୍ରକାଶ ପାଇଥିବାରୁ ମୁଁ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛି ।

ନକ୍ସାପାଲି (ମାନେଶ୍ୱର) }
ସମ୍ବଲପୁର
ପ୍ରଭାକର ପାଣିଗ୍ରାହୀ

## ଉତ୍ସର୍ଗ

ମୋର ପରମାରାଧ୍ୟ ପିତୃଦେବ ଶ୍ରୀ ରାମଚନ୍ଦ୍ର ପାଣିଗ୍ରାହୀଙ୍କ କରକମଳରେ ଏ ଅଧମ ପୁତ୍ରର "ଭକ୍ତି-ଅର୍ଘ୍ୟ" ଭକ୍ତିର ନିଦର୍ଶନ ସ୍ୱରୂପ ଉତ୍ସର୍ଗୀକୃତ ହେଲା ।

କୁମାର ପୂର୍ଣ୍ଣିମା }
୧୦-୧୦-୭୫
ଭକ୍ତିନତ
ପ୍ରଭାକର ପାଣିଗ୍ରାହୀ

# ସୂଚୀପତ୍ର



---

# ଭକ୍ତି-ଅର୍ଘ୍ୟ

## ବାଣୀ-ବନ୍ଦନା

ନମସ୍ତେ ମା ବୀଣାପାଣି
ନମସ୍ତେ ମାତ ପୁସ୍ତକଧାରିଣୀ
ମା ସରସ୍ୱତୀ
ନମସ୍ତୁତେ ମାତ ବାଣୀ । ୧ ।
ତୁମ୍ଭ ପାଦେ ଦେଇ ମନ
ତୁମ୍ଭର ରୂପକୁ କରେ ଧ୍ୟାନ
ମା ସରସ୍ୱତୀ
ବିନୟେ କରେଁ ଜଣାଣ । ୨ ।
ଶ୍ୱେତପଦ୍ମାସିନୀ ମାତ
ସର୍ବଦା ଚଞ୍ଚଳ ମୋହର ଚିତ୍ତ
ମା ସରସ୍ୱତୀ
ମୋ ଡାକ ବାରେ ଘେନ ତ । ୩ ।
ଅସ୍ଥିର ମୋହର ମତି
ତୋତେ ପୂଜିବାକୁ ନାହିଁ ଶକତି,
ମା ସରସ୍ୱତୀ
ଦୟାକର ଭଗବତୀ । ୪ ।

ତୋ ଦୟା ଭିକ୍ଷା ପାଇଣ
ମୂକ ଜନ କହିପାରେ ବଚନ
ମା ସରସ୍ୱତୀ
ମୂର୍ଖ ହୁଏ ବୁଦ୍ଧିମାନ । ୫ ।
କାଳିଦାସେ ଦୟା ବଳି
ମୂର୍ଖପଣ ତାଙ୍କର ଛଡ଼ାଇ
ମା ସରସ୍ୱତୀ
ମହାକବି କଲୁ ତୁହି । ୬ ।
ମହାମୂର୍ଖ ରତ୍ନାକର
ହୋଇଲେ ବାଲ୍ମୀକି କବିବର
ମା ସରସ୍ୱତୀ
ଲଭି କରୁଣା ତୋହର । ୭ ।
ଦୟାନିଧାନୀ ମା ବାଣୀ
ତୋହର ଅପାର ମହିମା ଜାଣି
ମା ସରସ୍ୱତୀ
ଦୟାଭିକ୍ଷା ମାଗେପୁଣି । ୮ ।
ଦିଅ ମାତ ବିଦ୍ୟାଦାନ
ସତ୍ୟଧର୍ମ ପଥେ ଯେବ ମୋ ମନ,
ମା ସରସ୍ୱତୀ
ଦିଅ ଶୁଭ ବୁଦ୍ଧି ଜ୍ଞାନ । ୯ ।
ମୂର୍ଖ ଅଧମ ଅଜ୍ଞାନ
ତୁମ୍ଭର ପାଦେ ପଶୁଛୁ ଶରଣ
ମା ସରସ୍ୱତୀ
କହେ ପ୍ରଭାକର ହୀନ । ୧୦ ।

---

# ମହାଲକ୍ଷ୍ମୀ

ନମୋ ଜଗତଜନନୀ
ନମସ୍ତେ ମାତ ସଂସାରତାରଣୀ
ମା ମହାଲକ୍ଷ୍ମୀ
ନମୋ ବିଷ୍ଣୁଙ୍କ ଘରଣୀ । ୧ ।

ନମୋ ମାତ ଦୟାବନ୍ତୀ
ଦରିଦ୍ରକୁ ଦେଉ ଧନସମ୍ପତ୍ତି
ମା ମହାଲକ୍ଷ୍ମୀ
ଅଗତିକୁ ଦେଉ ଗତି । ୨ ।

ଶରଣାଗତ-ତାରଣୀ
ନମସ୍ତେ ଅଭୟା ବରଦାୟିନୀ
ମା ମହାଲକ୍ଷ୍ମୀ
ମହାସିଦ୍ଧି-ପ୍ରଦାୟିନୀ । ୩ ।

ଦୁଃଖ-ଦାରିଦ୍ର୍ୟ-ନାଶିନୀ
ନମୋ କମଳା ସଙ୍କଟଭଞ୍ଜିନୀ
ମା ମହାଲକ୍ଷ୍ମୀ
ଜଗତର ଠାକୁରାଣୀ । ୪ ।

ନମୋ ମାତ ପଦ୍ମାସନୀ
ନମୋ ଶଙ୍ଖ-ଚକ୍ର-ଗଦା-ହସ୍ତିନୀ
ମା ମହାଲକ୍ଷ୍ମୀ
ଲୋକମାତା ନାରାୟଣୀ । ୫ ।

ହରଜାୟା ହେଜ ଗିର
ଜାଣୁଅଛ ମନକଥା ମୋହର
ମା ମହାଲକ୍ଷ୍ମୀ
ଦାରିଦ୍ର୍ୟବାଧା ମୋହର । ୬ ।
ଶରଣ ପାଦେ ତୁମ୍ଭର
କରୁଣାମୟୀ ବାରେ କୃପା କର ।
ମା ମହାଲକ୍ଷ୍ମୀ
କହେ ହୀନ ପ୍ରଭାକର । ୭ ।

—o—

# ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ

ଗୁରୁ ପଦ୍ମପାଦ ଦୁଇଟି ମୋର ଚିତ୍ତେ ରଖିଣ
ଭକ୍ତିଭରେ ଶନଦ୍ୱରେ ମୁଁ କରୁଅଛି ଜଣାଣ । ୧ ।
ହେ ଗୁ ରୁ ! ମୋ ଇଷ୍ଟଦେବତା ମୋର ଜୀବନପତି
ଦୟାନିଧି ଦୟା ବନ୍ଧଣ ବାରେ ହେଉ ଝନତ । ୨ ।
କଳିଯୁଗେ ଜନ୍ମ ଲଭିଣ ମନ୍ଦବୁଦ୍ଧି ମୋହର
ଧର୍ମପଥ ଦୃଢ଼ ସେବିଲି ନାହିଁ ତୁମ୍ଭ ପୟର । ୩ ।
ବିଷୟା ବିଷରେ ବୁଡ଼ିଣ ଘାଣ୍ଟି ହେଉଛି ନଷ୍ଟ
ସ୍ଥିର ହୋଇ ରହି ପାରୁନ ସଦା ଚଞ୍ଚଳ ମତି । ୪ ।
ହେ ଗୁରୁ ! ତୁମ୍ଭର ଦୟାରୁ ଏହି ଭବସାଗର
ତରିବ ବୋଲିଣ ମନରେ ଆଶା ରଖିଛି ମୋର । ୫ ।

ମୋହପରି ପାପୀଜନଙ୍କୁ ଉଦ୍ଧରିବାର ପାଇଁ
ନରରୂପେ ଜନ୍ମ ଲଭିଛ ଆହେ ଗୁରୁ ଗୋସାଇଁ । ୬ ।
ତୁମ୍ଭ ପାଦପଦ୍ମେ ସର୍ବଦା ରହୁ ମୋହର ମତି
ସଦା ଦୃଷ୍ଟି ରହୁ ମୋହର ତୁମ୍ଭ ନିର୍ଦ୍ଦେଶ ପ୍ରତି । ୭ ।
ତୁମ୍ଭେ ଦେଇଥିବା ମନ୍ତ୍ରଟି ଜପ କରିଣ ନିତି
କୃଷ୍ଣ ଗୁଣ ଗାଥା କୀର୍ତ୍ତନେ ସଦା ବଢ଼ୁ ମୋ ପ୍ରୀତି । ୮ ।
ସର୍ବଦା ମୋହର ଅନ୍ତର ନିର୍ମଳ କରିଣ
ଦୟା କ୍ଷମା ଶାନ୍ତି ସତ୍ୟରେ ନାଥ କର ଭୂଷଣ । ୯ ।
ଦୟା ଭିକ୍ଷା ମାଗୁ ଅଛଇ ଶ୍ରୀଚରଣେ ତୁମ୍ଭର
କୃପାନିଧି କୃପା କର ହେ କହଇ ପ୍ରଭାକର । ୧୦ ।

—୦—

# ନରରୂପୀ ନାରାୟଣ

ନମୋ ଗୁରୁଦେବ ନରରୂପୀ ବାସୁଦେବ
ତୁମେ ବ୍ରହ୍ମା ପୁଣି ତୁମେ ଅଟ ସଦାଶିବ । ୧ ।
ତୁମେ ଅଟ ପ୍ରିୟ ସଖା ବନ୍ଧୁ ପିତା ମାତା
ବିଦ୍ୟାଦାତା ଶିକ୍ଷାଦାତା ମୁକତି କରତା । ୨ ।
ଏହି ଭବସାଗରରୁ ତାରିବାର ପାଇଁ
ଏକମାତ୍ର କର୍ଣ୍ଣଧାର ଅଟ ହେ ଗୋସାଇଁ । ୩ ।
ଦୟା କ୍ଷମା ଶାନ୍ତି ସତ୍ୟବ୍ରତରେ ଭୂଷଣ
କରିଣ ତାରୁଛ ନାଥ ତୁମ୍ଭ ଶିଷ୍ୟଗଣ । ୪ ।

ଶତ ଶତ ପାପୀ ତାପୀ ତୁମ୍ଭର ଦୟାରୁ
ତରିଯାଇଛନ୍ତି ନାଥ ଏ ଭବ-ସାଗରୁ । ୫ ।
ତୁମ୍ଭ ପାଦ ପୂଜ ତୁମ୍ଭ ମୂର୍ତ୍ତି ଧ୍ୟାନ କରି
ତୁମ୍ଭ ଦତ୍ତ ସତଶିକ୍ଷା ସଦା ହୃଦେ ଧରି । ୬ ।
ତୁମ୍ଭ ଦତ୍ତ ମନ୍ତ୍ର ଜପି ସରିଯାଉ ଦିନ
ଦୟାନିଧି ଦୟା କର କହେ ପ୍ରଭୁ ହୀନ । ୭ ।

———

# ଚରଣେ ଶରଣ

ଶ୍ରୀଗୁରୁଚରଣ କରଇ ବନ୍ଦନ
ପ୍ରେମେ କରୁଛି ଜଣାଣ
ଜୟ ଗୁରୁଦେବ ମୋର ପ୍ରାଣଧବ
ଦୟା ବନ୍ଧୁ ଡାକ ଶୁଣ ହେ । ୧ ।

ଜୀବନଠାକୁର ଦୟାର ସାଗର
ଧରି ନରକଳେବର
ଅଜ୍ଞାନ ତିମିର ଘୋର ଅନ୍ଧକାର
ଅକ୍ଲେଶରେ ନାଶିପାର ହେ । ୨ ।
ଜ୍ଞାନାଞ୍ଜନ ଦେଇ ନୟନ ଫିଟାଇ
ନାଶ କର ମାୟାଦ୍ୱନ୍ଦ
ନମୋ ଇଷ୍ଟ ଦେବ ବ୍ରହ୍ମା ବିଷ୍ଣୁ ଶିବ
ଦିଅ କୃପା ମକରନ୍ଦ ହେ । ୩ ।

ନରରୂପୀ ହରି ବାରେ କୃପାକରି
ଭବସାଗରୁ ଉଦ୍ଧର
ହେ କୃପାସାଗର ବାରେ ଦୟାକର
କହେ ହୀନ ପ୍ରଭାକର ହେ । ୪ ।

———

# ହେ ଗୁରୁଦେବ ବାରେ କରୁଣା କର

**ହେ** ନରରୂପୀ ଇଷ୍ଟ ଦେବତା ମୋର
**ଗୁ**ହାରି କରୁଛି ମୁଁ ଶୁଣ ମୋ ଗିର । ୧ ।
**ରୁ**କ୍ଷ କର୍କଶ ଅଟେ ସ୍ୱଭାବ ମୋର
**ଦେ**ହରେ ଭକ୍ତିଭାବ ନାହିଁ ଆଦର । ୨ ।
**ବ**ଡ଼ ଅଭାଗା ଜନ ଅଟଇ ମୁହିଁ
**ବା**ଳ ଗୋପାଳ ନାମ ଧରିଲି ନାହିଁ । ୩ ।
**ରେ**ବତୀରମଣଙ୍କୁ ଚିହ୍ନି ନ ପାରି
**କ**ମଳଲୋଚନଙ୍କୁ ପୂଜା ନ କରି । ୪ ।
**ରୂ**ପ ଗୁଣ କୃଷ୍ଣର ମୁଖେ ନ ଭଣି
**ନା**ନା ପାପରେ ବୁଡ଼ି ରହିଛି ପୁଣି । ୫ ।
**କ**ର କ୍ଷମା ଏ ପାପୀ ତାପୀ ଜନକୁ
**ର**ଖ କୃଷ୍ଣ ପାଦରେ ମୋର ମନକୁ । ୬ ।

———

# ଜୀବନ-ଦେବତା

ଗୁରୁଙ୍କ ରୂପ କର ଧ୍ୟାନ । ଗୁରୁଚରଣେ ଦେଇ ମନ । ୧ ।
ଭକ୍ତିରେ କରୁଛି ଜଣାଣ । ହେ ଗୁରୁଦେବ ! ଡାକ ଶୁଣ । ୨ ।
ହେ ମୋର ଜୀବନ ଠାକୁର । ଦୟା ବହିଣ ଶୁଣ ଗିର । ୩ ।
ମିଛ ମାୟାରେ ବୁଡ଼ି ରହି । କୃଷ୍ଣ ଭଜନ କଲି ନାହିଁ । ୪ ।
ଘାଣ୍ଟି ହେଉଛି ଦିନ ରାତି । କୃଷ୍ଣରେ ନ ରଖିଣ ମତି । ୫ ।
ହେ ନରରୂପୀ ନାରାୟଣ । କଳି କବଳୁ କର ତ୍ରାଣ । ୬ ।
କୃପାସାଗର କୃପା କର । ପାପେ ନ ରହୁ ମତି ମୋର । ୭ ।
ହେ ଗୁରୁ ! ସତ୍ୟପଥେ ନେଇ । ଧର୍ମରେ ରଖ ମୋର ମନ । ୮ ।
ସହିବା ଶକ୍ତି ଦିଅ ମୋତେ । କ୍ରୋଧ ନ ରହୁ ହୃଦଗତେ । ୯ ।
ଦିଅ ହେ ମୋତେ ଦିବ୍ୟଜ୍ଞାନ । ତୁମ୍ଭ ଚରଣେ ରହୁ ମନ । ୧୦ ।
ହେ ଦେବ ! ଆଶୀର୍ବାଦ କର । ଅନ୍ତର ଶୁଦ୍ଧ ହେଉ ମୋର ।୧୧।
ଦୟା କ୍ଷମା ଶାନ୍ତି ସତ୍ୟରେ । ଭୂଷଣ କର ମୋତେ ବାରେ ।୧୨।
ହେ ମୋର ଜୀବନର ପତି । ତୁମ୍ଭ ବିନା ନାହିଁ ଗତି । ୧୩ ।
ତୁମ୍ଭ ପାଦରେ ନିଷ୍ଠା ଭକ୍ତି । ରହିବା ପାଇଁ ଦିଅ ଶକ୍ତି । ୧୪ ।
ଏ ଭବସାଗରୁ ନିସ୍ତାର । କର ହେ ଗୁରୁଦେବ ମୋର ।୧୫।
ହେ ଦୟାନିଧି ଦୟା କର । କହଇ ହୀନ ପ୍ରଭାକର । ୧୬ ।

---

# ରାଧାମୋହନ

ରାଧେକୃଷ୍ଣ ରାଧେକୃଷ୍ଣ    ରାଧେକୃଷ୍ଣ ରାଧେକୃଷ୍ଣ
ରାଧେକୃଷ୍ଣ ରାଧେକୃଷ୍ଣ ବୋଲରେ ଭାଇ
ହରିବିନା ଏ ସଂସାରେ    ପାପ ତାପ ନାଶିବାରେ
ଆଉ କେହି ଥିଲା ପରି ଜଣା ତ ନାହିଁ ।
ଏହି କଥା ନାହିଁ କି ମନେ ?
ନ ଭଜିଲୁ ରାଧେକୃଷ୍ଣ ନାମଟି ଧନେ । ୧ ।

ଅଜାମିଲ ପର ପାପୀ    ନାରାୟଣ ନାମ ଜପି
କରିଥିବା ପାପପଙ୍କୁ ହେଲା ଉଦ୍ଧାର
କଷ୍ଟ ହରଣୀ ବିପତ୍ତି    ହରିଲେ ଯେ ଡେର ଶ୍ରୀକୃଷ୍ଣ
ସେହି ପ୍ରଭୁ ଅଟନ୍ତି ତ ଦୟାସାଗର
ଏହି କଥା ନାହିଁ କି ମନେ ?
ନ ଭଜିଲୁ ରାଧେକୃଷ୍ଣ ନାମଟି ଧନେ । ୨ ।

କଳିଯୁଗେ ନାମ ସାର    ଏ କଥାଟି ହେଜୁ କର
ନାମ ଜପି କେତେ ପାପୀ ହେଲେଣି ପାର
ଏ ଜୀବନ ନୁହେ ଥିର    ସଦା ଅଟଇ ଅସ୍ଥିର
ରାଧେକୃଷ୍ଣ ନାମ ଜପି ହେବୁଟି ପାର
ଏହି କଥା ନାହିଁ କି ମନେ ?
ନ ଭଜିଲୁ ରାଧେକୃଷ୍ଣ ନାମଟି ଧନେ । ୩ ।

ମାତା ଗର୍ଭେ ଥିଲାବେଳେ    ଭଜୁଥିଲୁ ସଦାକାଳେ
ନନ୍ଦସୁତ ଗୋପୀନାଥ ମଧୁସୂଦନ
କାଳୁ ଜନ୍ମ ହେଲାକ୍ଷଣି     ସଂସାର ମାୟାରେ ପଡ଼ି
ପାସୋରିଲୁ ଜପିବାକୁ ସେ ହରିନାମ
ଏହି କଥା ନାହିଁ କି ମନେ ?
ନ ଭଜିଲୁ ରାଧେକୃଷ୍ଣ ନାମଟି ଧ୍ୟାନେ । ୪ ।
ଏ ସଂସାର-ଜାଲେ ପଡ଼ି     ଧର୍ମପଥ ଯାଉ ଛାଡ଼ି
ଅହରହେ ପାପକର୍ମେ ବଳାଉ ମନ
ଯାହାକୁ ତୁ ବୋଲୁ ମୋର   ସେ ତ ନୁହଇ ତୋହର
କରି ନ ପାରିବ ତୋର ଦୁଃଖ ହରଣ
ଏହି କଥା ନାହିଁ କି ମନେ ?
ନ ଭଜିଲୁ ରାଧେକୃଷ୍ଣ ନାମଟି ଧ୍ୟାନେ । ୫ ।
କିଏ ତୋର ପିତାମାତା   କିଏ ତୋର ବନ୍ଧୁ ଭ୍ରାତା
କିଏ ତୋର ଦାରସୁତ ଅଟେ ରେ ଭାଇ
କେତେ ଦିନ ତାଙ୍କ ସଙ୍ଗେ କାଟିବୁ ରେ ନାନାରଙ୍ଗେ
ଦିନେ ମରିଯିବା କଥା ଭାବିଲୁ ନାହିଁ
ଏହି କଥା ନାହିଁ କି ମନେ ?
ନ ଭଜିଲୁ ରାଧେକୃଷ୍ଣ ନାମଟି ଧ୍ୟାନେ । ୬ ।
ଆସିଅଛୁ ଏକା ହୋଇ    ସଙ୍ଗରେ ନ ଯିବେ କେହି
ଯେତେବେଳେ ତୋର ଦେହ ହେବଟି ନାଶ
କେଉଁଠାରୁ ହେଲୁ ଜାତ   କେଉଁଠାରେ ହେବୁ ମୃତ
କରି ନ ପାରିବେ କେହି ଏହା ପ୍ରକାଶ
ଏହି କଥା ନାହିଁ କି ମନେ ?
ନ ଭଜିଲୁ ରାଧେକୃଷ୍ଣ ନାମଟି ଧ୍ୟାନେ । ୭ ।

ଦୀନହୀନ ଦାସ ମୁହିଁ  ତଜ୍ଞ ମୋତେ ଭବଗ୍ରାହୀ
ପଡ଼ିଅଛି ଶରଣ ମୁଁ ତୁମ୍ଭ ପଦ୍ମରେ
ଆହେ ପ୍ରଭୁ କୃପାସିନ୍ଧୁ  ଦୀନଜନଙ୍କର ବନ୍ଧୁ
ଦୟା ବହି ଏ ପାପୀକୁ ଉଦ୍ଧର ବାରେ
ରାଧେକୃଷ୍ଣ ବୋଲରେ ଭାଇ
ମୂର୍ଖ ପ୍ରଭାକର କର ଯୋଡ଼ି ଜଣାଇ । ୮ ।

—o—

# ଜଗନ୍ନାଥ ଜଣାଣ

ଆସ ଆସ ଆସ ଭାଇ  ଆମ୍ଭେ ସବେ ସାଙ୍ଗ ହୋଇ
ଯିବା ଆଜ ସେହି ନୀଳାଚଳ ଧାମକୁ,
ଯେଉଁଠାରେ ଜଗନ୍ନାଥ  ଭାଇଭଉଣୀ ସହିତ
ବିଜେ କରିଅଛନ୍ତି ଦର୍ଶନ ଦେବାକୁ
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବନ୍ଦନ କରି । ୧ ।
ପୁରୀ ଧାମେ ପହଞ୍ଚିଣ  ସମୁଦ୍ରରେ କରି ସ୍ନାନ
ସ୍ୱର୍ଗଦ୍ୱାର ପଥେ ଯିବା ବଡ଼ଦାଣ୍ଡକୁ
ବଡ଼ଦାଣ୍ଡେ ଛିଡ଼ା ହୋଇ  ନୀଳଚକ୍ରକୁ ଅନାଇ
ପ୍ରଣାମ କରିବା ସେହି ଚକାଡୋଳାକୁ
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବନ୍ଦନ କରି । ୨ ।

ସିଂହଦ୍ୱାରେ ପ୍ରବେଶିବା ହନୁମାନଙ୍କୁ ପୂଜିବା
ତା ପରେ ପୂଜିବା ପତିତପାବନଙ୍କୁ
ସେଠାରୁ ଭିତରେ ଯାଇ ମହାଦେବେ ପୂଜିବଇଁ
ଯାଇଣ ବାଇଶ ପାବଚ୍ଛ ନିକଟକୁ
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବହନ କରି । ୩ ।
ତା ପରେ ଦକ୍ଷିଣେ ଯିବା କଳ୍ପବଟକୁ ଦେଖିବା
ସତ୍ୟନାରାୟଣଙ୍କର ପୂଜା କରିବା
ସେଠାରୁ ସମସ୍ତେ ଯିବା ମୁକ୍ତିମଣ୍ଡପ ଦେଖିବା
ତା ପରେ ବିମଳାଦେବୀ ପାଖକୁ ଯିବା
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବହନ କରି । ୪ ।
ବିମଳା ଦେବୀଙ୍କୁ ପୂଜି ସାକ୍ଷୀ ଗୋପିନାଥେ ଭଜି
ପ୍ରବେଶିବା ଲକ୍ଷ୍ମୀଦେବୀଙ୍କର ମନ୍ଦିରେ
ଲକ୍ଷ୍ମୀଦେବୀଙ୍କୁ ପୂଜିଣ ସେଠାରେ କରି ବିଶ୍ରାମ
ଯିବା ଆମ୍ଭେ ନବଗ୍ରହଙ୍କ ଦର୍ଶନରେ
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବହନ କରି । ୫ ।
ନବଗ୍ରହଙ୍କୁ ପୂଜିଣ ଉତ୍ତର ଦିଗେ ଯାଇଣ
ପ୍ରବେଶ କରିବା ଆମ୍ଭେ ବଡ଼ ଦେଉଳେ
ଗରୁଡ଼ସ୍ତମ୍ଭ ପଛରେ ଛିଡ଼ା ହୋଇଣ ସଭିଏ
ପତିତପାବନମୁଖ ଦେଖିବା ଡୋଳେ
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବହନ କରି । ୬ ।

ସେଠାରୁ ଭିତରେ ଯିବା      ତିନ ମୂର୍ତ୍ତିଙ୍କୁ ଦେଖିବା
ବସିଥିବେ ରତ୍ନ ସିଂହାସନ ଉପରେ
ଦୁଇ ପାଖେ ଦୁଇ ଭାଇ      ମଧ୍ୟରେ ସୁଭଦ୍ରା ମାଈ
ପାପୀତାପୀମାନଙ୍କୁ ତାରିବା ପାଇଁ ରେ
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବନ୍ଦନ କରି । ୭ ।
ସୁଦର୍ଶନ ଚକ୍ର ଦେଖି      ପବିତ୍ର କରିବା ଆଖି
କରିଥିବା ପାପ-ପଙ୍କୁ ହେବା ଉଦ୍ଧାର
ଆମ୍ଭେ ସର୍ବେ ଉଚ୍ଚ ସ୍ୱରେ      ଡାକିବା ପ୍ରଭୁଙ୍କୁ ବାରେ
ଚିତ୍ତ ରଖି ଜଗନ୍ନାଥ ପାଦପଦ୍ମର
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବନ୍ଦନ କରି । ୮ ।
ସର୍ବେ ହୋଇ ଏକମୁଖ      ଡାକିବା ହେ ପଦ୍ମମୁଖ !
ସତ୍ୟପଥେ ଧର୍ମପଥେ ନେଇ ଆମ୍ଭଙ୍କୁ
ପର ଉପକାର କରି      ଆମ୍ଭ ଦିନ ଯାଉ ସରି
ଦିନ ରାତି ଜପି ଜପି ହରିନାମକୁ
ଏହି କଥା ମନରେ ଧରି
ଆସ ଆସ ଆସ ଭାଇ ବନ୍ଦନ କରି । ୯ ।
ଦୀନ ଦାସ ମୂର୍ଖ ମୁହିଁ      ଆହେ ପ୍ରଭୁ ଭାବଗ୍ରାହୀ
ପଶୁଅଛି ଶରଣ ମୁଁ ତୁମ୍ଭ ପାଦରେ
କିଞ୍ଚିତ କରୁଣା କରି      ପାପ-ପଙ୍କୁ ହାନି କରି
ପ୍ରଭୁ ! ଦିଅ ମୋତେ ଆଶ୍ରା ତୁମ୍ଭ ପାଦରେ
ନମୋ ନମୋ ବ୍ରହ୍ମାଣ୍ଡସାଇଁ
ହୀନ ପ୍ରଭାକର କର ଯୋଡ଼ି କହଇ । ୧୦ ।

---

# ଝୁଲଣି

ଆଜ କ ଆନନ୍ଦ ଭାଇ ଆଜ କ ଆନନ୍ଦ
ଝୁଲଣା ଦୋଳରେ ବଜେ ବୃନ୍ଦାବନ-ଚନ୍ଦ୍ର । ୧ ।

ସବ ଗୋପଗୋପୀ ମିଳି ଆନନ୍ଦ ମନରେ
ଝୁଲଣଯାତ୍ରା ଉତ୍ସବ ପାଳନ୍ତି ସଧୀରେ । ୨ ।

ବଧିମତେ ପୂଜା କରି ଶ୍ରୀରାଧାମୋହନ
ଝୁଲାବନ୍ତି ରାଧାକୃଷ୍ଣ ଆନନ୍ଦ ହୋଇଣ । ୩ ।

ଆହା କେଡ଼େ ଶୋଭା !
ସମସ୍ତଙ୍କ ମନଲୋଭା । (ଘୋଷା)

ଧନ୍ୟ ଧନ୍ୟ ବ୍ରଜଧାମ ଧନ୍ୟ ବ୍ରଜନାରୀ
ଧନ୍ୟ ଧନ୍ୟ ବୃନ୍ଦାବନ କୁଞ୍ଜଲତାଗିରି । ୪ ।

ଅଶରଣର ଶରଣ ଯଶୋଦାନନ୍ଦନ
ତୁମ୍ଭ ଶ୍ରୀପାଦପଦ୍ମରେ ପଶୁଛୁଁ ଶରଣ । ୫ ।

ଦୟାନିଧି ଦୟା କରି ବାରେ ଦୟା କର
ଦୟା ଭିକ୍ଷା ମାଗୁଅଛୁଁ ତୁମ୍ଭର ଛାମୁର । ୬ ।

ବାରେ ଦୟା କର
କହେ ହୀନ ପ୍ରଭାକର । (ଘୋଷା)

———

# ବୃନ୍ଦାବନ-ଚନ୍ଦ୍ର

ଆଜ କି ଆନନ୍ଦ ଆନନ୍ଦ । ଦୋଳରେ ବୃନ୍ଦାବନଚନ୍ଦ୍ର ।୧।
ରାଧାମୋହନ ରାଧା ସଙ୍ଗେ । ଝୁଲୁଅଛନ୍ତି ନାନା ରଙ୍ଗେ ।୨।
ଦୋଳରେ ମଦନମୋହନ । ହରନ୍ତି ଆମ୍ଭ ମନପ୍ରାଣ ।୩।
ନମସ୍ତେ ଜଗଜ୍ଜୀବନ । ପଶୁଛୁଁ ତୋ ପାଦେ ଶରଣ ।୪।
କୃପାସାଗର କୃପା କର । କହଇ ହୀନ ପ୍ରଭାକର ।୫।

---

# କୁଞ୍ଜେ ନିକୁଞ୍ଜବିହାରୀ

ଦ୍ୱାଦଶ କୁଞ୍ଜରେ ଆଜ କୁଞ୍ଜବିହାରୀ
କି ସୁନ୍ଦର ଦିଶୁଅଛି ଗୋପନଗରୀ ।୧।
ଗୋପୀମାନେ ପ୍ରତି କୁଞ୍ଜେ ସାଜି ଝୁଲଣ
ଝୁଲାଉଅଛନ୍ତି ପ୍ରେମେ ରାଧାମୋହନ ।୨।
ଗୋପାଙ୍ଗନା ନାନା ଫୁଲେ ହାର ଗୁନ୍ଥିଣ
ସୁବେଶ କରିଅଛନ୍ତି ରାଧାରମଣ ।୩।
ନାନା ରାଗିଣୀରେ ଗାଇ ଝୁଲଣ ଗୀତ
ମୋହୁଅଛଇ ଦେଖଣାହାରୀଙ୍କ ଚିତ୍ତ ।୪।
କିଶୋରୀକିଶୋର ରୂପ ନେତ୍ରେ ଦେଖିଣ
ପବିତ୍ର ହୋଇଲା ଆଜ ପ୍ରଭା ନୟନ ।୫।

---

# ଶ୍ରୀ ସତ୍ୟନାରାୟଣ

ନମୋ ପ୍ରଭୁ ପାଟାମ୍ବର ସତ୍ୟନାରାୟଣ
ଭକ୍ତିଭରେ ଡାକୁଅଛୁ ବାରେ ଡାକ ଶୁଣ । ୧ ।
ଜୟ ଜୟ ସର୍ବବ୍ୟାପୀ ଜୟ ହେ ଠାକୁର
ସତ୍ୟନାରାୟଣ ନାଥ ବାରେ ଦୟା କର । ୨ ।
ତୁମ୍ଭ ଶ୍ରୀଚରଣ ତଳେ ପଶୁଛୁ ଶରଣ
ଦୟାନିଧି ଦୟା କର ପତିତପାବନ । ୩ ।
ଅବନ୍ତୀ ନଗରେ ନାଥ ବିଜୟ କରଣ
ଅନେକ ସଙ୍କଟୁ ତାରିଅଛ ସନ୍ଥ ଜନ । ୪ ।
ପଦ୍ମପୁର ଗ୍ରାମବାସୀ ବିପ୍ରନାରାୟଣ
ତୁମ୍ଭ ଦୟାରୁ ହେ ନାଥ ହେଲା ଧନବାନ । ୫ ।
ରମାବତୀ ପୂଜା କରି ପ୍ରଭୁ ପାଟାମ୍ବର
ମାଳାବତୀ ନାମେ କନ୍ୟା ହୋଇଲା ତାହାର । ୬ ।
କାଠୁରିୟା ପୀର ପୂଜ ହେଲା ମହା ସୁଖୀ
ତୁମ୍ଭର ମହିମା ପ୍ରଭୁ କେ ପାରିବ ଲେଖି ! ୭ ।
ତୁମ୍ଭେ ଦୟା କଲେ ନାଥ ଦୂର କର ବାରୁ
ତାରି ଦିଅ ମହାପ୍ରଭୁ ସର୍ବ ସଙ୍କଟରୁ । ୮ ।
ତୁମ୍ଭ ପୂଜା କରି ନାଥ ଏ କି ମୋର ଦଶା
ଦୟା କର ଦୀନବନ୍ଧୁ ନ କର ନିରାଶା । ୯ ।
ଦୟାନିଧି ଦୟାକରି ବାରେ 'ଡାକ' ଶୁଣ
ତୁମ୍ଭ ପାଦେ ରଖ ମତି ସଙ୍କଟ ଫେଡ଼ଣ । ୧୦ ।

ଅନ୍ତରର କଥା ମୋର ଜାଣୁଛ ଠାକୁର
କୃପା କରି ଫେଡ଼ ନାଥ ଦୁର୍ଦ୍ଦଶା ମୋହର ।୧୧।
ଶ୍ରୀଗୁମ୍ଫଟରେ ବନପୁରେ କରୁଛି ବସତି
ଦୟା କର ଦୀନବନ୍ଧୁ ତୁମ ଦାସ ପ୍ରତି ।୧୨।
ଦୀର୍ଘାୟୁ କରଣ ନାଥ ଫେଡ଼ ମୋ ଦୁର୍ଗତି
ସବୁବେଳେ ତୁମ୍ଭ ପାଦେ ରହୁ ମୋର ମତି ।୧୩।
ପତିତପାବନ ପ୍ରଭୁ ସତ୍ୟନାରାୟଣ
ତୁମ୍ଭେ ଅଟ ନାଥ ଅଶରଣର ଶରଣ ।୧୪।
ଆହେ ଦୀନଜନ-ବନ୍ଧୁ କମଳାର ସାଇଁ
ତୁମ୍ଭ ପାଦପଦ୍ମ ଧ୍ୟାପି ପ୍ରସ୍ତାକର କହି ।୧୫।

---

# ରାଈକିଶୋରୀ ସଂବାଦ

ରାଈ ବନୋଦ୍ଧମା ବଦନେ
ଲଳିତାଙ୍କୁ ଡାକି କହନ୍ତି କାନେ
ସଜନୀ ଲୋ ପ୍ରାଣମିତଣୀ ଲୋ
ଶୁଣ ଯାହା ଅଛି ମନେ ସଜନୀ ଲୋ ।୧।

ପ୍ରାଣଧନ କହ୍ନାଇକି
ମୋହର ପରାଣ ଦେଇଛି ଝକ
ସଜନୀ ଲୋ ପ୍ରାଣମିତଣୀ ଲୋ
ଦେଖି ବାଙ୍କ ଚାହାଣି କି ସଜନୀ ଲୋ ।୨।

କହ୍ନାଇ ମୋର ଠାକୁର
ହୃଦପୁରେ ସଦା ଅଛନ୍ତି ମୋର
ସଜନୀ ଲୋ ପ୍ରାଣ ମିତଣୀ ଲୋ
ଶ୍ରୀକୃଷ୍ଣ ଦୟାସାଗର ସଜନୀ ଲୋ । ୩ ।

ଭବ-ବନୋବଧିଆ ହରି
ଜାଣନ୍ତି ମନର ଭବ ମୋହରି
ସଜନୀ ଲୋ ପ୍ରାଣମିତଣୀ ଲୋ
ବେଗେ ଯାଅ ଦୟା କରି ସଜନୀ ଲୋ । ୪ ।

କହିବୁ ଶ୍ୟାମେ ବୁଝାଇ
ତାଙ୍କ ବିନା ରହି ପାରିବ ନାହିଁ
ସଜନୀ ଲୋ ପ୍ରାଣ ମିତଣୀ ଲୋ
କୁଞ୍ଜେ ଆସିବେ କହ୍ନାଇ ସଜନୀ ଲୋ । ୫ ।

ରାଧାଙ୍କର କଥା ମାନି
ଲଳିତା କହନ୍ତି କୃଷ୍ଣଙ୍କୁ ବାଣୀ
ନାଗର ହେ ରସସାଗର ହେ
ଚାଲ କୁଞ୍ଜେ ବେଣୁପାଣି, ନାଗର ହେ । ୬ ।

ରାଧା ମନ ଭବ-ଜାଣି
କୁଞ୍ଜେ ଧାଇଁ କଲେ ସେ ବେଣୁପାଣି
ସୁଜନ ହେ ସାଧୁ ସଜ୍ଜନ ହେ
ଦାସ କହେ ପ୍ରଭାକର ଭଣି, ସୁଜନ ହେ । ୭ ।

---

# ମୁରଲୀ ମନୋହର

ଆରେ ମୂଢ଼ ବାୟା ମନ ବେଗେ ଯାଅ ବୃନ୍ଦାବନ
ବୃନ୍ଦାବନ-ବିହାରୀଙ୍କି ଦେଖ
ସେ ମୁରଲୀ-ମନୋହର ଶ୍ରୀଅଙ୍ଗେ ପୀତ ଅମ୍ବର
କି ସୁନ୍ଦର ଦିଶେ ପଦ୍ମମୁଖ ।

ଛନ୍ଦା ଚରଣେ ନୂପୁର କାଇଞ୍ଚ ମାଳ ଗଳାର
ମୟୂର ଚୂଳ କୃଷ୍ଣର ଶିରେ
ଦେଖ ସେ ମୁରଲୀପାଣି ଦେଖ ତ' ବାଙ୍କ ଚାହାଣି
ତ୍ରିଭଙ୍ଗିମା ଠାଣି ଦେଖ ବାରେ ।

କାହ୍ନୁ ପାଦେ ରଖି ଚିତ୍ତ ପ୍ରେମେ ହୋଇ ଉନମତ୍ତ
କୃଷ୍ଣ ନାମ କର ତୁ କୀର୍ତ୍ତନ
ଶ୍ୟାମର ପାଦେ ଶରଣ ପଶ ରେ ଅଧମ ମନ
କହେ ଦାସ ପ୍ରଭାକର ହୀନ ।



# ଭଜ ବନମାଳୀ

ଭଜ ରାଧା ବନମାଳୀ,

ପ୍ରେମେ ଆନନ୍ଦେ        ଦେଇଣ ତାଳି ରେ
ଭଜ ରାଧା ବନମାଳୀ (ଘୋଷା) ।

ରାଧାମାଧବର        ନାମ ସୁଧାଧାର
ଅମୃତ ରସରୁ ବଳି ରେ ।୧।

ଶ୍ୟାମା ଶ୍ୟାମ ନାମ        ଅଟେ ସୁଖଧାମ
ସେ ଦୁହେଁ ଦୁଖୀଃ-ସଙ୍ଗାଳି ରେ ।୨।

ଶ୍ରୀ ରାଧାଗୋବିନ୍ଦ        ବୃନ୍ଦାବନ-ଚନ୍ଦ୍ର
ଅଟନ୍ତି ନେହପିଉଳୀ ରେ ।୩।

ଯୁଗଳ କିଶୋର        ସେବା ସଦା କର
ତାଙ୍କ ଠାଟରେ କର ଅଳି ରେ ।୪।

କୀର୍ତ୍ତନ ନଗର        କଳିଯୁଗେ ସାର
ଜପ ରାଧେଶ୍ୟାମ ବୋଲି ରେ ।୫।

ଏ ଭବସାଗର        ହେବ ସହଜ ପାର
ଭଜ ରାଧେକୃଷ୍ଣ ବୋଲି ରେ ।୬।

ଯୋଡ଼ି ନବଘନ କର        ଧ୍ୟାନ ପ୍ରଭାକର
ଭଣେ ଶ୍ୟାମା ଶ୍ୟାମ ବୋଲି ରେ ।୭।



# ହେ କୃଷ୍ଣ

ହେ କୃଷ୍ଣ ଜଗତଈଶ୍ୱର । ହେ କୃଷ୍ଣ ଦୟାର ସାଗର ॥
ହେ କୃଷ୍ଣ ମଦନମୋହନ । ହେ କୃଷ୍ଣ ଜଗତଜୀବନ ॥
ହେ କୃଷ୍ଣ ଭୁବନପାଳକ । ହେ କୃଷ୍ଣ ଦୁଃଖ-ବିନାଶକ ॥
ହେ କୃଷ୍ଣ ପତିତପାବନ । ହେ କୃଷ୍ଣ ଅଧମତାରଣ ॥
ହେ କୃଷ୍ଣ ଶରଣରକ୍ଷକ । ହେ କୃଷ୍ଣ ଗୋଧନପାଳକ ॥
ହେ କୃଷ୍ଣ ବ୍ରହ୍ମାଣ୍ଡଠାକୁର । ହେ କୃଷ୍ଣ ପୀତାମ୍ବରଧର ॥
ହେ କୃଷ୍ଣ ହେ ଶ୍ୟାମସୁନ୍ଦର । ହେ କୃଷ୍ଣ ହେ ମୁରଲୀଧର ।
ହେ କୃଷ୍ଣ ଗୋବିନ୍ଦମାଧବ । ହେ କୃଷ୍ଣ ଗୋପାଳଯାଦବ ॥
ହେ କୃଷ୍ଣ ଶ୍ରୀଧର ଶ୍ରୀପତି । ହେ କୃଷ୍ଣ ଅଗତିର ଗତି ॥
ହେ କୃଷ୍ଣ ତୋ'ପାଦେ ଶରଣ । ହେ କୃଷ୍ଣ ପାଦେ ଦିଅ ସ୍ଥାନ ॥



# ଗୁଣ୍ଡିଚା ଯାତ୍ରା

ଆଜ କି ଆନନ୍ଦ ଦିନ
ନନ୍ଦଘୋଷରେ ଚକାନୟନ ହେ
ଆଜ କି ଆନନ୍ଦ ଦିନ । (ଘୋଷା)

ପତିତପାବନ ଦେଇ ଦରଶନ
ହରନ୍ତି ଆମ୍ଭର ମନ ହେ
ଗୁଣ୍ଡିଚା ଘରକୁ ବିଜେ କରିବାକୁ
ରଥେ ମଦନମୋହନ ହେ ।

ବଡ଼ଦାଣ୍ଡ ଶୋଭା ଦେଖି ମନ ଲୋଭା
ପ୍ରେମେ ପୂର୍ଣ୍ଣ ହୃଦମାନ ହେ
ରଥର ଉପରେ ଉଡ଼େ ଫର ଫରେ
ବାନାଟି କପିକେତନ ହେ ।

ଦାରୁବ୍ରହ୍ମ ଦେଖି ମନ ଯାଏ ଲାଖି
ଜଗନ୍ନାଥ ଦୟାବାନ ହେ
ଓ ଭଙ୍ଗିମା ଠାଣି ମନ ନିଏ କିଣି
ଜୟ ଜଗତଜୀବନ ହେ ।

ପାପୀ ତାପୀ ଜନ ପଶୁଛୁଁ ଶରଣ
ଗୋବିନ୍ଦ ଦଧିବାମନ ହେ
ଭୁଜତଳେ ରଖ ପ୍ରଭୁ ପଦ୍ମମୁଖ
ଅଶରଣର ଶରଣ ହେ ।

ପାପ ତାପ ନାଶ ଜଗତର ଈଶ
ଶ୍ରୀଚରଣେ ଦିଅ ସ୍ଥାନ ହେ ।
ଦୟାର ସାଗର ବାରେ ଦୟା କର
କହେ ପ୍ରଭାକର ଧ୍ୟାନ ହେ ।

---

# ବଜରଂଗବଳୀ

ଜୟ ହେ ପବନସୁତ
ଜୟ ଜୟ ରାମଚନ୍ଦ୍ରଙ୍କ ଦୂତ
ହେ ହନୁମାନ
ଜୟ ହେ ଅଞ୍ଜନାପୁତ୍ର । ୧ ।
ଜୟ ଜୟ ମହାବୀର
ଜୟ କପିଈଶ ଗୁଣସାଗର
ହେ ହନୁମାନ
ଜୟ କେଶରୀ କୁମର । ୨ ।
ଜୟ ବଜରଙ୍ଗବଳୀ
ତୁମର ତୁମ୍ଭରେ କରୁଛି ଅଳି
ହେ ହନୁମାନ
ଜୟ ଦୁଃଖୀର ସଙ୍ଗାଳି । ୩ ।
ଜୟ ଜୟ ଦୟାବାନ
ଦୟା କର ଯେବେ ମୋର ଜଣାଣ
ହେ ହନୁମାନ
ଜୟ କରୁଣାନିଧାନ । ୪ ।

ଜୟ ଜୟ ବୁଦ୍ଧିମାନ
ଏ ବୁଦ୍ଧିହୀନେ ଦିଅ ବୁଦ୍ଧି ଦାନ
ହେ ହନୁମାନ
ଜୟ ହେ ମାତିପ୍ରବୀଣ । ୫ ।

ଜୟ ଜୟ ବଳବାନ
ବଳହୀନକୁ ଦିଅ ବଳ ଦାନ
ହେ ହନୁମାନ
ଜୟ ଭୟ ନିବାରଣ । ୬ ।

ଜୟ ସଙ୍କଟନାଶନ
ସଙ୍କଟ ମୋର କର ବିମୋଚନ
ହେ ହନୁମାନ
କହେଁ ପ୍ରଭାକର ଧ୍ୟାନ । ୭ ।



## ପ୍ରେମେ କିଣା ହରି

ଲଳିତା ବିଶାଖା                    ଇନ୍ଦୁ ଚିତ୍ରରେଖା
ବିନେ ବୃନ୍ଦାବନ କୁଞ୍ଜରେ
କି ଆନନ୍ଦ ମନରେ ଗୋ
ସଖି ବିନୋଦିନୀ ତାଙ୍କ ସାଙ୍ଗରେ
କି ଆନନ୍ଦ ମନରେ ଗୋ । ୧ ।

ଫୁଲଲତା ଡାଳେ                    ମଣ୍ଡପ ସାଜଣ
ବାଟକୁ ଅଛନ୍ତି ଅନାଇ
କି ସୁନ୍ଦର ଦଶଇ ଗୋ
ଆସିବେ ବୋଲିଣ କୃଷ୍ଣ କହ୍ନାଇ । ୨ ।
ଯୂଈ ଜାଈ ମଲ୍ଲୀ                    ଚମ୍ପା ଫୁଲ ଆଣି
ଗନ୍ଧ ଫୁଲ ମାଳ୍ଯ ଗୁନ୍ଥିଣ
କି ଆନନ୍ଦ ମନ
ଆସିବେ ବୋଲି ଗୋ ପ୍ରାଣର ଧନ । ୩ ।
କି ଆନନ୍ଦ ତାଙ୍କ ମନ
ସେ ନନ୍ଦନନ୍ଦନ                    ଶ୍ରୀଅଙ୍ଗେ ଲେପନ
କରିବେ ଅଗୁରୁ ଚନ୍ଦନ
କି ପ୍ରେମରେ ପରିପୂର୍ଣ୍ଣ
ଗୋପବାଳାଙ୍କର ହୃଦୟମାନ । ୪ ।
ଅଧର ଅତର                    ସୁବାସିତ ନୀର
ନାନା ଫଳମୂଳ ଆଣିଣ
କି ଯତ୍ନରେ ସାଇତିଣ
ରଖିଅଛନ୍ତି ସେ ଗୋପିକାଗଣ
କି ଯତ୍ନରେ ସାଇତିଣ । ୫ ।
କହ୍ନାଇର ପାଇଁ                    ନାନା ଦ୍ରବ୍ୟ ଭୋଗ
ପାନ ଗୁଆ ଆଦି ସହିତ
କି ସୁଖେ ରଖିଛନ୍ତି ତ । ୬ ।
ଗୋଲାପଜଳକୁ                    ଗୋଲାପୀ ରଙ୍ଗରେ
ମିଶାଇ ରଖିଣ ଅଛନ୍ତି
କେତେ ହୃଷ୍ଟ ତାଙ୍କ ମତି
ପିଚକା ମାରିବେ କୃଷ୍ଣ ପ୍ରତି । ୭ ।

ସବୁ ଗୋପବାଳୀ ଧରି ଅର୍ଘ୍ୟଥାଳୀ
ରାଧିକାଙ୍କୁ ବେଶ କରିଣ
ପ୍ରେମରେ ଅଭିବାଦନ
କରିବେ ଗୋ ସେହି ନନ୍ଦନନ୍ଦନ । ୮ ।

ଏପରି ଅନେକ ଭାବେ ସଜ ହୋ'ଇ
କୃଷ୍ଣ ଆସିବା ବାଟ ଚାହିଁ
ଦୀର୍ଘ କାଳ ଗଲା ପାଇଁ
ନ ଆସିଲେ ସେହି କୃଷ୍ଣ କହ୍ନାଇ । ୯ ।

ଆସିବା ବିଳମ୍ବ ଦେଖି ଗୋପନାରୀ
ଡାକଲେ କୃଷ୍ଣଙ୍କୁ ଚାହିଁଲେ
ଦେଖି ତାଙ୍କ ପ୍ରେମଭାବ
କୁଞ୍ଜେ ବିଜେ କଲେ ରାଧାମାଧବ
ଦେଖି ତାଙ୍କ ପ୍ରେମଭାବ । ୧୦ ।

ଦେଖି ପ୍ରାଣଧନ ଗୋପାଙ୍ଗନାଗଣ
ଆନନ୍ଦେ ବିହ୍ୱଳ ହୋଇଣ
ବନ୍ଦାପନା କରି ହରି
ସୁଖରେ କାଟିଲେ ସେହି ଶର୍ବରୀ । ୧୧ ।

ବନ୍ଦାପନା କରି ହରି
ଧନ୍ୟ ଗୋପନାରୀ ଧନ୍ୟ ବ୍ରଜପୁରୀ
ଧନ୍ୟ ଧନ୍ୟ ସେ ବୃନ୍ଦାବନ
ଧନ୍ୟ ଗିରି ଗୋବର୍ଦ୍ଧନ
କହେ ଅଧମ ପ୍ରଭାକର ହୀନ । ୧୨ ।



# ଅନ୍ନକୋଟ

ଆଜ କି ଆନନ୍ଦ ଭାଇ ଆଜ କି ଆନନ୍ଦ
ଗିରି ଗୋବର୍ଦ୍ଧନେ ବିଜେ ବୃନ୍ଦାବନଚନ୍ଦ୍ର । ୧ ।

ସବୁ ଗୋପଗୋପୀ ମିଳି ଆନନ୍ଦ ମନରେ
ଅନ୍ନକୋଟ ଉତ୍ସବକୁ ପାଳନ୍ତି ସଧୀରେ । ୨ ।

ଗିରି ଗୋବର୍ଦ୍ଧନ ତଳେ ସମସ୍ତେ ରହିଣ
ବିଧିମତେ ପୂଜୁଛନ୍ତି ଗିରି ଗୋବର୍ଦ୍ଧନ । ୩ ।

ସାତ ବରଷର ପୁଅ ମାତା କୋଳେ ରହି
ଲହୁଁ ଲହୁଁ ଘୋର ମାୟା ଦେଲେ ତ ଭିଆଇ । ୪ ।

ଗିରି ଶିଖେ ଯାଇ ହରି ବିଶ୍ୱରୂପ ଧରି
ଚକିତ କରିଲେ ସବୁ ଗୋପ ନରନାରୀ । ୫ ।

ଗିରି ରୂପ ଦେଖି ଗୋପଗୋପୀ ହେଲେ ସୁଖୀ
ଗିରିରୂପ ଦେଖି ।

ଗିରି ଶିଖରରୁ ବେନି ଭୁଜକୁ ବିସ୍ତାରି
ଗିରି ଚଢ଼ୁ ଦ୍ରବ୍ୟ ଭୋଗ ବେନି ହସ୍ତେ ଧରି । ୬ ।

ଆନନ୍ଦେ ଭୋଜନ କଲେ ନାନା ମିଷ୍ଟ ଅନ୍ନ
ଦହି ଦୁଧ ସର ଆଦି ସେ କରିଲେ ପାନ । ୭ ।

ସବୁ ଗୋପ ଗୋପାଙ୍ଗନା ମନକୁ ମୋହିଲେ
କୃଷ୍ଣ ମାୟା ବୋଲି କେହି ଜାଣି ନ ପାରିଲେ । ୮ ।

ଯଶୋଦା କୋଳରେ ଥାଇ ଶ୍ରୀ କୃଷ୍ଣ କହ୍ନାଇ
ରୋହିଣୀ କୋଳରେ ରହି ବଳରାମ ଭାଇ । ୯ ।

ଗୋପୀ ଗୋପାଳଙ୍କ ସଙ୍ଗେ ଚକଚେ ବୃନ୍ଦାବନ
ବଣ୍ଣୁରୂପ ମୁଖୁ ବାଣୀ ସମସ୍ତେ ଶୁଣନ୍ତି । ୧୦ ।
ଆହା କେଡ଼େ ଶୋଭା ସମସ୍ତଙ୍କ ମନଲୋଭା
ଆହା କେଡ଼େ ଶୋଭା !
ଗୋପାଳଙ୍କୁ ଆଶୀର୍ବାଦ କରି ଗୋବର୍ଦ୍ଧନ
ଅଭୟ ବରକୁ ହୃଷ୍ଟେ କରିଲେ ପ୍ରଦାନ । ୧୧ ।
ଆଶୀର୍ବାଦ ପାଇ ସର୍ବ ଗୋପ ନରନାରୀ
ପ୍ରସାଦ ପାଇଣ ଗଲେ ନିଜ ନିଜ ପୁରୀ । ୧୨ ।
ଧନ୍ୟ ଧନ୍ୟ ବ୍ରଜଧାମ ଧନ୍ୟ ବ୍ରଜନାରୀ
ଧନ୍ୟ ଧନ୍ୟ ବୃନ୍ଦାବନ ଗୋବର୍ଦ୍ଧନ ଗିରି । ୧୩ ।
ଅଶରଣର ଶରଣ ଯଶୋଦାନନ୍ଦନ
ତୁମ୍ଭ ଶ୍ରୀଚରଣ ତଳେ ପଶୁଛୁଁ ଶରଣ । ୧୪।
ଦୟାନିଧି ଦୟା କର ବାରେ ଦୟା କର
ଦୟା ଭିକ୍ଷା ମାଗୁଅଛୁ ତୁମ୍ଭର ଛାମୁର
ବାରେ ଦୟା କର
କହେ ହୀନ ପ୍ରଭାକର ବାରେ ଦୟା କର । ୧୫ ।

ମୁଦ୍ରାକର—ଶ୍ରୀ ରବୀନ୍ଦ୍ରନାଥ ମିଶ୍ର, ସଂସାର ପ୍ରେସ, କଟକ-୧

